ISSN: 2456-9194, Vol. III, Issue. II, Sept 2019

# ପ୍ରତ୍ୟୟ

**(Journal of Odia Language, Culture and Science)**

Journal Homepage: http://cphfs.in/research.php

# ସାଂସ୍କୃତିକ ମୂଲ୍ୟବୋଧର ଅବକ୍ଷୟ: ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର

**ପିଙ୍କି କର**

ଗବେଷକ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତିବିହାର, ବୁର୍ଲା

E-mail: gopalkara100@gmail.com

**ସାରମର୍ମ:** ସାଂସ୍କୃତିକ ମୂଲ୍ୟବୋଧ ହେଉଛି ସମାଜର ନାଭିକେନ୍ଦ୍ର । ଏହା ଉପରେ ଗୋଟିଏ ସମୁଦାୟ ବା ସାମାଜିକ ସଂଗୋଷ୍ଠୀ ନିଜକୁ ସ୍ଥିର ଓ ପ୍ରତିଷ୍ଠିତ କରିଥାଏ ଏବଂ ମାନବୀୟ ସହୃଦୟତା ଓ ସହାବସ୍ଥାନର ଏକ ଯଥାର୍ଥ ପରିବେଶ ସୃଷ୍ଟି କରିଥାଏ । ଏହାଭିତରେ ପରଂପରା, ପ୍ରକୃତି, ପର୍ବପର୍ବାଣୀ, ରୀତିନୀତି, ପୋଷାକ, ବିଶ୍ୱାସ, ଲୋକବିଦ୍ୟା ସବୁକିଛି ସମାହିତ ହୋଇଥାନ୍ତି। ଏହିକ୍ରମେ ଉତ୍କଳୀୟ ସାଂସ୍କୃତିକ ମୂଲ୍ୟବୋଧକୁ ବିଶ୍ଳେଷଣ କଲେ, ଏହା କେଉଁ ପ୍ରାଚୀନ କାଳରୁ ପାରସ୍ପରିକ ସଦ୍ଭାବ, ଭାଇଚାରା, ଈଶ୍ୱରବିଶ୍ୱାସ, ଅହଂସା ଓ ନୀତିନିଷ୍ଠତାକୁ ନେଇ ଆଜିପର୍ଯ୍ୟନ୍ତ ବଞ୍ଚିଥିବା ଓ ବଢିଥିବା ପ୍ରତୀୟମାନ ହେଲେବି ଯୁଗରୁଚିର ପରିବର୍ତ୍ତନରେ ଏହି ମୂଲ୍ୟବୋଧରେ ଯେଉଁ ଅବକ୍ଷୟ ଘଟିଛି, ତାହାକୁ  ତର୍କସମ୍ମତଭାବେ ଉପସ୍ଥାପନ କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ। ଏହି ପ୍ରବନ୍ଧରେ ନାଟ୍ୟକାର ଡକ୍ଟର ନାରାୟଣ ସାହୁଙ୍କ ,'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରୁ ଉଦାହରଣଗ୍ରହଣ କରି ସାଂସ୍କୃତିକ ମୂଲ୍ୟବୋଧର ଅବକ୍ଷୟକୁ ସଯୁକ୍ତି ଆଲୋଚନା କରାଯାଇଛି ।

**ମୂଳଶବ୍ଦ:** ସାଂସ୍କୃତିକ ମୂଲ୍ୟବୋଧ, ଓଡ଼ିଆ ନାଟକ, ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର, ନାଟ୍ୟକାର ନାରାୟଣ ସାହୁ

ସଂସ୍କୃତି ଏକ ବହୁମୁଖୀ ସମାଜର ଜୀବନବିନ୍ଦୁ. ଏହା ସାହିତ୍ୟ, କାହାଣୀ, ଚଳଣୀ, ନୃତ୍ୟ, ଗୀତ ଓ ବାଦ୍ୟ ଆଦି ବିଭିନ୍ନ ମାଧ୍ୟମରେ ନିଜକୁ ପରିଭାପ୍ରକାଶ କରିଥାଏ, ଆମକୁ ଆନନ୍ଦ ପ୍ରଦାନ କରିଥାଏ, ଅତୀତକୁ ସ୍ମରଣ କରାଇଦେଇଥାଏ ଏବଂ ଆମର ଭବିଷ୍ୟତର କଳ୍ପନାକୁ ବାରମ୍ବାର ଉଜ୍ଜୀବିତ କରିଥାଏ. ତେବେ ଏହି କ୍ଷେତ୍ରକୁ ସାଂପ୍ରତିକ ଜ୍ଞାନବିଜ୍ଞାନ ସମାଜର ପୃଷ୍ଠଭୂମିରୁ ଆଲୋଚନା କଲେ, ଏଥିରେ ବହୁ ପରିବର୍ତ୍ତନ, ପାରଂପରିକ ମୂଲ୍ୟବୋଧର ଅବମାନନା ଓ ରୂପାନ୍ତର ଦେଖିବାକୁ ମିଳେ. ପୁନଃ ସାଂସ୍କୃତିକ ମୂଲ୍ୟବୋଧର ଏହି ବ୍ୟାପକ ପରିବର୍ତ୍ତନକୁ ଆମ ସାହିତ୍ୟସ୍ରଷ୍ଟାଗଣ ତାଙ୍କର ସୂକ୍ଷ୍ମ ଦୃଷ୍ଟିରେ। ତୋଳିଧରି ପାଠକ ଓ ଦର୍ଶକ ସମ୍ମୁଖରେ ଦର୍ପଣଭଳି ତୋଳିଧରନ୍ତି ଏବଂ ସାମାଜିକ ମୂଲ୍ୟବୋଧକୁ ପୁନଃବ୍ୟବସ୍ଥିତ କରିବାକୁ ଚେଷ୍ଟା କରନ୍ତି.

ଅଶି ପରବର୍ତ୍ତୀ ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟ କ୍ଷେତ୍ରରେ ଡକ୍ଟର ନାରାୟଣ ସାହୁଙ୍କ ଯଶ ଓ ପ୍ରତିଷ୍ଠା ଆମ ସାହିତ୍ୟିକ ବଳୟକୁ ବହୁଭାବେ ବୁଦ୍ଧିମନ୍ତ କରିଛି । ସାହିତ୍ୟର ବିଭିନ୍ନ ଦିଗ ଉପରେ ରୁଚି ରଖିଥିବା ଡକ୍ଟର ସାହୁ ଜଣେ ବିଶିଷ୍ଟ ସମାଲୋଚକ ସହ ସଫଳ ନାଟ୍ୟକାର ରୂପେ ସୁପରିଚିତ । ବେତାର ନାଟକ, ଦୂରଦର୍ଶନ ନାଟକ, ପଥପ୍ରାନ୍ତ ନାଟକ ରଚନା ଦିଗରେ ମନୋନିବେଶ କରିଥିଲେ ହେଁ ଜଣେ ସଫଳ ମଞ୍ଚନାଟକର ସ୍ରଷ୍ଟା ଭାବେ ସେ ପ୍ରତିଷ୍ଠିତ । ଓଡ଼ିଆ ସାହିତ୍ୟରେ ନାଟକ ରଚନା କରି ନାଟ୍ୟକାର ଡକ୍ଟର ନାରାୟଣ ସାହୁ ଆପଣାର ଏକ ନିଆରା ପରିଚୟ ତିଆରି କରିପାରିଛନ୍ତି । ତାଙ୍କ ଦ୍ୱାରା ରଚିତ ମଞ୍ଚନାଟକ ଗୁଡ଼ିକ ହେଲା ପ୍ରଶ୍ନ (୧୯୮୨), ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର (୧୯୯୦), କାହାଣୀ ସବାଶେଷ ଲୋକର (୧୯୯୨), ସୁବର୍ଣ୍ଣ ସକାଳ (୧୯୯୮), ମୂକ (୨୦୦୦), ପୁନଶ୍ଚ ସଂଗ୍ରାମ  (୨୦୦୦), ଉପାସନା(୨୦୦୨), ଅପରାହ୍ନର ଅବଶୋଷ  (୨୦୦୨), ଅଧା ଦେଖା ସ୍ୱପ୍ନ (୨୦୦୪), ପ୍ରାୟଶ୍ଚିତ୍ତ ଓ ଅନ୍ୟାନ୍ୟ ନାଟକ (୨୦୦୫), କ୍ରାନ୍ତି (୨୦୦୭), ନିଷିଦ୍ଧ ସଂଳାପ (୨୦୦୭), ଦୂର ଆକାଶର ତାରା(୨୦୦୮), ଶେଷ କଥା(୨୦୧୦), ମୂଷା (୨୦୧୪), ଉତ୍ତର ପର୍ବ ଓ ଅନ୍ୟାନ୍ୟ ନାଟକ (୨୦୧୪), ତିନୋଟି ନାଟକର ତ୍ରିବେଣୀ (୨୦୧୯), ଅନାଗତ (୨୦୧୯) । ଏହି ନାଟ୍ୟ ସମଗ୍ର ମଧ୍ୟରେ ଅଙ୍କବିହୀନ ଚଉଦଟି ଦୃଶ୍ୟ ସମ୍ବଳିତ ଏକ ଭିନ୍ନ ସ୍ୱାଦର ସୃଷ୍ଟି ହେଉଛି 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ।

ନାଟ୍ୟକାର 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକ ପାଇଁ ୧୯୯୧ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ନାଟକଟି ଓଡ଼ିଶା ତଥା ଦେଶର ବିଭିନ୍ନ ପ୍ରାନ୍ତରେ ମଞ୍ଚସ୍ଥ ହୋଇ ଆଦୃତି ଲାଭ କରିଛି । ନାଟକରେ ନାଟ୍ୟକାର ସମାଜରେ ସାଂସ୍କୃତିକ  ମୂଲ୍ୟବୋଧର ଅବକ୍ଷୟ ସଂପର୍କରେ ଦର୍ଶାଇଛନ୍ତି । ସ୍ୱାଧୀନତା ପରେ ଧର୍ମ ଓ ଜାତିକୁ ନେଇ ଅନେକ ଦଙ୍ଗା ହୋଇଛି । ଆଧ୍ୟାତ୍ମିକ ପୀଠ

ଦେବାଳୟମାନଙ୍କରେ ସଂଘର୍ଷ ଓ ରକ୍ତପାତର ପ୍ରମାଣ ରହିଛି । ୧୯୮୯ ମସିହାରେ ଜାତୀୟ ସ୍ତରରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିବା ବାବ୍ରି ମସଜିଦ୍ ଭାଙ୍ଗିବା ଘଟଣା ନାଟ୍ୟକାରଙ୍କୁ ପ୍ରଭାବିତ କରିଥିଲା । ବିଶେଷ ଭାବରେ ଧର୍ମକୁ ନେଇ ରାଜନୀତି, ଧର୍ମ ଅନ୍ତରାଳରେ ଭ୍ରଷ୍ଟ ବଡପଣ୍ଡାମାନଙ୍କ ବ୍ୟଭିଚାରଗ୍ରସ୍ତ କାଯ୍ୟକଳାପ, ଦେଶର ସାଂସ୍କୃତିକ ଭିତ୍ତିଭୂମିର ଅବମୂଲ୍ୟାୟନ ନାଟ୍ୟକାରଙ୍କୁ ଏପରି ନାଟକ ରଚନା ପାଇଁ ଖୋରାକ ଯୋଗାଇଛି । ନାଟ୍ୟକାର ଡକ୍ଟର ସାହୁ ନାଟକର ମୁଖବନ୍ଧ (ଅଗ୍ରଲେଖ)ରେ କହିଛନ୍ତି – "ଧର୍ମକୁ ନେଇ ଲାଗିରହିଥିବା ଭଳିକି ଓ ଏହାର କାର୍‌ପଟଦାର୍ ଗଣଙ୍କ କାର୍ଯ୍ୟକଳାପକୁ ତୀକ୍ଷ୍ଣ ଭାବେ ବ୍ୟଙ୍ଗ କରାଯାଇଛି କୌଣସି ନିର୍ଦ୍ଦିଷ୍ଟ ଧର୍ମର ବାହକ ନୁହେଁ ଏହି ନାଟକ । ଈଶ୍ୱର ସବୁଧର୍ମରେ ଅଛନ୍ତି ଆଉ ରହିବେ ମଧ୍ୟ । ତେବେ ତାଙ୍କୁ ନେଇ କେତେକ ସୁବିଧାବାଦୀ ଗୋଷ୍ଠୀ ନିଜନିଜର ଫାଇଦା ପାଇଁ ଏକ ପ୍ରକାର ବେପାର ଚଳାଇଛନ୍ତି । ଏହି ସାଂପ୍ରଦାୟମାନଙ୍କର ମୁଖା ଖୋଲିଦେବା ହେଉଛି ନାଟକର ମୂଳଲକ୍ଷ୍ୟ ।" (୧)

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଦେଶରେ ଦେଖା ଦେଇଥିବା ଧାର୍ମିକ ସଂକୀର୍ଣ୍ଣତା ତଥା ସାଂସ୍କୃତିକ ଅବକ୍ଷୟତାକୁ ନାଟକରେ ତୀବ୍ର ବ୍ୟଙ୍ଗ କରାଯାଇଛି । ସେଥିପାଇଁ ନାଟ୍ୟକାର ଉପସ୍ଥାପନ କରିଛନ୍ତି ଏକ ଲୋମହର୍ଷଣକାରୀ ଘଟଣାଯୁକ୍ତ କାହାଣୀର । ମୁଖ୍ୟତଃ ଅତୀତରେ ଘଟିଯାଇଥିବା ଭୋପାଳ ଗ୍ୟାସ୍ ଦୁର୍ଘଟଣା, ପବିତ୍ର ଦେବାଳୟ ପୀଠରେ ନାରୀ ଧର୍ଷଣ ଭଳି ଅନୈତିକ କାର୍ଯ୍ୟ ତଥା ଈଶ୍ୱରଙ୍କୁ ନେଇ ହିନ୍ଦୁ, ମୁସଲମାନ୍, ଖ୍ରୀଷ୍ଟିଆନ୍ ପ୍ରଭୃତିଙ୍କ ମଧ୍ୟରେ ହେଉଥିବା ମନାନ୍ତର ଓ ମତାନ୍ତରକୁ ଆଧାର କରି ଏହି ନାଟକର କଳେବର ପ୍ରସ୍ତୁତ ।

ପବିତ୍ର ପୀଠ ଈଶ୍ୱରଧାମ । ଦେବାଳୟର ଚତୁଃପାଶ୍ୱର୍ରେ ସର୍ବଦା ଭକ୍ତମାନଙ୍କର କୋଳାହଳ ହୋଇଥାଏ ଈଶ୍ୱରଙ୍କ ନିକଟରେ ଗୁହାରି ଜଣାଇବା ପାଇଁ ନାଟ୍ୟକାର ପବିତ୍ର ଦେବାଳୟ ପୀଠର କଳୁଷିତ ରୂପକୁ ଲୋକଲୋଚନକୁ ଆଣିବାର ପ୍ରୟାସ କରିଛନ୍ତି । ସାଧାରଣତଃ ଦେବାଳୟଗୁଡ଼ିକରେ ପୂଜକ, ମହାସେବକମାନେ ଭକ୍ତମାନଙ୍କପାଇଁ ଦେବତୁଲ୍ୟ ମନେ ହୋଇଥାନ୍ତି। କିନ୍ତୁ ସମୟ ବଦଳିଛି ବର୍ତ୍ତମାନ ମହାସେବକ ବା ପୂଜକମାନେ ନିଜର ଯୌନ ଲାଳସା ମେଣ୍ଟାଇବା ନିମନ୍ତେ ଈଶ୍ୱରଙ୍କୁ ମାଧ୍ୟମ ରୂପେ ଗ୍ରହଣ କରି ସାଧାରଣ ଭକ୍ତମାନଙ୍କୁ ଶୋଷଣ କରୁଛନ୍ତି। ଏକଦା ଆଧାତ୍ମିକ ଚେତନାର ପବିତ୍ରସ୍ଥଳୀ ଦେବାଳୟ ଆଜି ଅରାଜକତା ତଥା ଭ୍ରଷ୍ଟାଚାରର କେନ୍ଦ୍ରସ୍ଥଳୀରେ ପରିଣତ ହୋଇଯାଇଛି । ଧର୍ମକୁ ଦ୍ୱାହି ଦେଇ ଦେଉଳର ମହାସେବକମାନେ କିପରି ନିରୀହ ଜନତାଙ୍କୁ ଶୋଷଣ କରିଚାଲିଛନ୍ତି, ତାର ସ୍ପଷ୍ଟଚିତ୍ର ନାଟକର ମେରୀ ଚରିତ୍ର ମାଧ୍ୟମରେ ଦର୍ଶାଯାଇଛି । ଭୋପାଳଗ୍ୟାସ୍ ଦୁର୍ଘଟଣାରେ ମେରୀ ଓ ଯୋଶେଫ୍‌ର ଏକମାତ୍ର ସନ୍ତାନର ମୃତ୍ୟୁ ଘଟେ ଏବଂ ମେରୀ ମାତୃତ୍ୱ ଲାଭରୁ ବଞ୍ଚିତ ହେବା ସହିତ ଯୋଶେଫ୍‌ର ଗୋଟିଏ ଆଖି ନଷ୍ଟ ହୋଇଯାଏ । ମା' ହେବାରୁ ବଞ୍ଚିତା ମେରୀ ମର୍ମାହତ ହୋଇ ଈଶ୍ୱରଙ୍କ ଆଶୀର୍ବାଦ ପାଇବା ଉଦ୍ଦେଶ୍ୟରେ ଯୋଶେଫ୍ ସହିତ ପହଞ୍ଚିଛି ଦେବାଳୟ ନିକଟରେ । ସର୍ବଧର୍ମ ସମନ୍ୱୟର ପ୍ରତୀକ ବୋଲାଉଥିବା ଈଶ୍ୱରଙ୍କ ସେହି ଦେବାଳୟ ଭିତରକୁ ଖ୍ରୀଷ୍ଟିଆନ୍ ବୋଲି ସେମାନଙ୍କ ପ୍ରବେଶ ନିଷେଧ କରାଯାଇଛି । କିନ୍ତୁ ସେଠାରେ ଉପସ୍ଥିତ ଥିବା ମହାସେବକର ଲୋଲୁପ ଦୃଷ୍ଟି ପଡ଼ିଛି ମେରୀ ଉପରେ । କୁଚକ୍ରୀ, ଲମ୍ପଟ ମହାସେବକ ଯୌନ ଲାଳସା ମେଣ୍ଟାଇବାକୁ ଯାଇ ମେରୀକୁ ଈଶ୍ୱରଙ୍କ ଦର୍ଶନ କରାଇଦେବାର ମିଥ୍ୟା ପ୍ରତିଶ୍ରୁତି ଦେଇ ମନ୍ଦିର ଭିତରକୁ ଆଣି ତାକୁ ଧର୍ଷଣ କରି ତାକୁ ହତ୍ୟା କରିଛି ଏବଂ ତାର ମୃତଶରୀରକୁ ସମୁଦ୍ର ବାଲିରେ ଫିଙ୍ଗି ଦେଇଛି । କପଟୀ, ଭ୍ରଷ୍ଟ ମହାସେବକ ନିଜକୃତ ପାପକର୍ମକୁ ଲୁଚାଇବାକୁ ଯାଇ ଠାକୁରଙ୍କ ବଂଶୀ ଓ ଉତ୍ତରୀୟକୁ ଗୋପନରେ ଚୋରାଇନେଇ ମେରୀର ଶବପାଖରେ ରଖିଦେଇ ଈଶ୍ୱରଙ୍କୁ ତା'ର ହତ୍ୟାକାରୀ ବୋଲି ଘୋଷଣା କରିଛି ଏବଂ ରାଜାଙ୍କ ସମ୍ମୁଖରେ ଈଶ୍ୱରଙ୍କ ବିରୁଦ୍ଧରେ ଆପତ୍ତିଜନକ ମନ୍ତବ୍ୟ ପ୍ରଦାନ କରି କହିଛି - "କହିବି?

"ମହାସେବକ - ଛି . . . ଛି. . . ସିଏ କି ଖରାପକଥା । କାନରେ ଶୁଣି ହେବନି । କେମିତି

ରାଜା- ଲୋକେ କ'ଣ ଚର୍ଚ୍ଚା କରୁଛନ୍ତି?

ମହାସେବକ- ଲୋକ ମାନଙ୍କର ବିଶ୍ୱାସ, ଏ ସବୁ ଈଶ୍ୱରଙ୍କ କାମ । ଅନେକ ଦିନରୁ ମନ୍ଦିରରେ ରାଧା ମୂର୍ତ୍ତୀଟିଏ ସ୍ଥାପନ କରିବା ପାଇଁ ଈଶ୍ୱର ସ୍ୱପ୍ନାଦେଶ କରିଥିଲେ ।

ରାଜା- ସୁନାର ରାଧା ମୂର୍ତ୍ତୀ ତିଆରି କରିବାଟା ପିଲାଖେଳ ନୁହେଁ ।

ମହାସେବକ- ଆପଣ କୁହନ୍ତୁ ମହାରାଜ । କେତେଦିନ ଈଶ୍ୱର ଏଇମିତି ସାଥୀହୀନ ହୋଇ ନିଃସଙ୍ଗ ଜୀବନ ଯାପନ କରିଥାନ୍ତେ? ତାଙ୍କର ବିରହ ଯନ୍ତ୍ରଣା ପ୍ରବଳ ହେବାରୁ ଶେଷରେ ସେ ଏମିତି କାଣ୍ଡଟାଏ କରିବସିଲେ ।"(୨)

ମହାସେବକ ଚରିତ୍ର ମଧ୍ୟରେ ଭଣ୍ଡାମୀ ଓ ଶଠତା ଲକ୍ଷଣ ପରିଦୃଷ୍ଟ । ଏପରିକି ଈଶ୍ୱର ସମର୍ପିତ ଦେବଦାସୀ ଲୀଳାମୟୀ ସହ ମଧ୍ୟ ସେ ଅବୈଧ ସଂପର୍କ ସ୍ଥାପନ କରି ନିଜର ତୃଷ୍ଣା ମେଣ୍ଟାଇବାର ଲାଳସାକୁ ଚରିତାର୍ଥ କରିବା ପାଇଁ ମଧ୍ୟ କୁଣ୍ଠା ପ୍ରକାଶ କରିନାହିଁ । ଦେବାଳୟରେ ଈଶ୍ୱରଙ୍କ ନିକଟରେ ଥାଇ ଏପରି ଜଘନ୍ୟ କାର୍ଯ୍ୟରେ ଲିପ୍ତ ରହି ମଧ୍ୟ ତାର ତିଳେମାତ୍ର ଅନୁଶୋଚନା ନାହିଁ ବରଂ ଈଶ୍ୱରଙ୍କୁ ସେ ଅବମାନନା କରିଛି ଏବଂ ଦୃଢତାର ସହ ସେ ଈଶ୍ୱରଙ୍କ ଶକ୍ତି ପରୀକ୍ଷା କରିବା ଭଳି ଧମକପୂର୍ଣ୍ଣ ବାଣୀ ଶୁଣାଇଛି-

"ଈଶ୍ୱର- ମହାସେବକ, ସବୁ ଜିନିଷର ଗୋଟେ ସୀମା ଅଛି? ତମେ ମୋର ସେବାଦାସୀ ସହିତ ଦୈହିକ ସଂପର୍କ ସ୍ଥାପନ କଲ. . . । ମୋ ଭକ୍ତ ମେରୀର ସର୍ବନାଶ କଲ. . . ।

ମହାସେବକ- ତମେ ଯଦି ଈଶ୍ୱର, ସର୍ବଶକ୍ତିମାନ. . . ବାଧା ଦେଲ ନାହିଁ କାହିଁକି? ସେତେବେଳେ କୁଆଡ଼େ ଥିଲା ତମର ଐଶୀ ଶକ୍ତି ।"(୩)

ମହାସେବକର ଏପରି ବକ୍ତବ୍ୟ ଈଶ୍ୱର ତଥା ଭକ୍ତଙ୍କ ମନରେ ଗଭୀର ଆଘାତ ଦେଇଛି । ବର୍ତ୍ତମାନ ସମୟରେ ମୂଲ୍ୟବୋଧ ଜନିତ ସଂକଟ, ନୈତିକ ଆଦର୍ଶର ଅଧୋଗତି, ଧର୍ମ ନାମରେ ପ୍ରତାରଣା କିପରି ସମାଜ ତଥା ବ୍ୟକ୍ତି ଜୀବନକୁ ବିପର୍ଯ୍ୟସ୍ତ କରିବା ସହ ସାଂସ୍କୃତିକ ବିପର୍ଯ୍ୟୟର ପ୍ରମୁଖ କାରଣ ହୋଇଛି ତାହା ନାଟ୍ୟକାର ସୂଚାଇଛନ୍ତି ।

ଧର୍ମଧାରୀ ମହାସେବକର ଏତାଦୃଶ ଔଦ୍ଧତ୍ୟପୂର୍ଣ୍ଣ ଆଚରଣ ଏବଂ ନୈତିକତା ବିହୀନ ଜଘନ୍ୟ କାର୍ଯ୍ୟ କଳାପ ଈଶ୍ୱରଙ୍କୁ ଅସହାୟ କରିପକାଇଛି । ସର୍ବଶକ୍ତିମାନ ଈଶ୍ୱର ଏପରି ପରିସ୍ଥିତିରେ ନିଜକୁ

ଦୁର୍ବଳ ଓ ନିଃସହାୟ ମନେ କରିଛନ୍ତି । ଧର୍ମର ଅନ୍ତରାଳରେ ବ୍ୟଭିଚାରଗ୍ରସ୍ତ ମଣିଷର ଏପରି କୁ ପ୍ରବୃତ୍ତି ହିନ୍ଦୁଧର୍ମ ତଥା ସଂସ୍କୃତିର ଉଦାରତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛି । ମହାସେବକର ଏପରି କଳୁଷିତ ବିଭତ୍ସ କାର୍ଯ୍ୟପାଇଁ କଳଂକ ଲାଗିଛି ମହାନ୍ ଧର୍ମ ସଂସ୍କୃତିରେ । ମହାସେବକରୂପୀ ଧର୍ମଧାରୀମାନଙ୍କ ଏପରି ଆଶାଳୀନ ଆଚରଣ ତଥା ଈଶ୍ୱରଙ୍କୁ ଭର୍ତ୍ସନା କରିବା ପ୍ରସଙ୍ଗ ସେମାନଙ୍କ ସ୍ଖଳିତ ବ୍ୟକ୍ତିତ୍ୱର ପରିପ୍ରକାଶ କରିଛି ।

ବାସ୍ତବିକ ଧର୍ମଗୁରୁମାନଙ୍କ ଏତାଦୃଶ ଆଚରଣ ଆମ ସଂସ୍କୃତି, ସଂସ୍କାର, ପରଂପରା ଓ ମୂଲ୍ୟବୋଧର ବିନାଶର କାରଣ । ଏପରି ଭଣ୍ଡ ପ୍ରଚାରକ ମହାସେବକମାନଙ୍କ ଯୋଗୁଁ ହିଁ ସମାଜ ଠେଲି ହୋଇଯାଏ ସାଂସ୍କୃତିକ, ଧାର୍ମିକ ବିପର୍ଯ୍ୟୟ ଆଡ଼କୁ । ପବିତ୍ର ଦେବାଳୟର ଏହି ଦୁର୍ନୀତିଗ୍ରସ୍ତ ମହାସେବକମାନଙ୍କ ଦେହର ଭୋକ ମେଣ୍ଟାଇବା ପାଇଁ ପ୍ରତାରିତ ହୋଇ ବଳି ପଡ଼ନ୍ତି ନିରୀହ ଭକ୍ତମାନେ । ଧର୍ମ, ସଂସ୍କୃତିରେ କଳଂକ ବୋଲି ଧର୍ମର ଛତ୍ରଛାୟାତଳେ ଏମାନେ ମଉଜ ମଜ୍‌ଲିସ୍ କରି, ଜୀବନକୁ ଉପଭୋଗ କରନ୍ତି। ଧର୍ମ ସଂପ୍ରଦାୟ ନାଁରେ ଲାଗିଥିବା ସଂଘର୍ଷ ଆମ ମହାନ ସଂସ୍କୃତିକୁ କିପରି କ୍ଷତାକ୍ତ କରୁଛି, ତାର ଦୃଷ୍ଟାନ୍ତ ମିଳେ ନାଟକରୁ ।

ପ୍ରକୃତରେ ଦେଖିବାକୁ ଗଲେ ମଠ, ମନ୍ଦିର ଆଦି ଆଧ୍ୟାତ୍ମିକ ସ୍ଥଳୀ ମାନଙ୍କରେ ଧର୍ମକୁ ଦ୍ୱାହି ଦେଇ ରୀତିମତ ଚାଲିଆସିଛି ଶୋଷଣ ଓ ଭ୍ରଷ୍ଟାଚାର । ସମାଜର ଏହି ଧର୍ମଧାରୀ ବଡ଼ପଣ୍ଡାମାନଙ୍କ ହାତରେ ଧର୍ମ ସଂସ୍କୃତି ଖେଳଣା ପାଲଟିଯାଇଛି । ସମାଲୋଚକ ଡକ୍ଟର ରମାକାନ୍ତ ସାମନ୍ତରାୟଙ୍କ ମତରେ- "ଆଜି ସଭ୍ୟ ଶିକ୍ଷିତ ସମାଜ ପାଖରେ ମୂଲ୍ୟବୋଧ ଅଚଳ ପଇସା ମାତ୍ର; ଯାହାର କିଛି ବି ମୂଲ୍ୟ ନାହିଁ। ମହାନ୍ ମୂଲ୍ୟବୋଧର ଦାୟାଦ ଭାରତ ଆଜି ପୃଥିବୀର ଦୁର୍ନିତିଗ୍ରସ୍ତ ଦେଶମାନଙ୍କ ଆଗ ଧାଡ଼ିରେ ଠିଆ ହୋଇଛି । ସଂସ୍କାର, ସଂସ୍କୃତି ଆଜି ଶବ୍ଦ ମାତ୍ର ।" (୪)

ନାଟକର ଅନ୍ତିମ ପର୍ଯ୍ୟାୟରେ ଈଶ୍ୱରଙ୍କୁ ନେଇ ସୃଷ୍ଟି ହୁଏ ରାଜନୀତି । ଈଶ୍ୱରଙ୍କୁ ନେଇ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱରେ ସୂତ୍ରପାତ ଘଟେ । ମନ୍ଦିର ମସ୍‌ଜିଦ୍ ଓ ଗୀର୍ଜା ମଧ୍ୟରେ ବିଭିନ୍ନ ଧର୍ମାବଲମ୍ବୀମାନେ ଈଶ୍ୱରଙ୍କ ଆସ୍ଥାନ ଅଛି ବୋଲି ଦାବୀ ଉପସ୍ଥାପନ କରି ପରସ୍ପର ମଧ୍ୟରେ ସଂଘର୍ଷରେ ବ୍ୟାପୃତ ରୁହନ୍ତି । ଏଥିପାଇଁ ସମାଜରେ ଧର୍ମ ଧର୍ମ ମଧ୍ୟରେ ପ୍ରତିବାଦ ଓ ପ୍ରତିରୋଧର କଥା ସବୁବେଳେ ମୁଣ୍ଡ ଟେକି ଉଠିଛି । ସେଥିପାଇଁ ଦେହରେ ରକ୍ତଥିବା ପର୍ଯ୍ୟନ୍ତ ସଂଗ୍ରାମ କରିବା ନିମନ୍ତେ ଦୃଢ଼ୋକ୍ତି ପ୍ରକାଶ କରିଛି ସୁଲେମାନ । ନିଜ ଅଧିକାରକୁ ମାଗିକି ନୁହେଁ ବରଂ ଜୋର ଜବରଦସ୍ତ ସଂଘର୍ଷ କରି ଛଡ଼ାଇ ଆଣିବାକୁ ପଡ଼ିଥାଏ ବୋଲି ସୁଲେମାନର ଦମ୍ଭପୂର୍ଣ୍ଣବାଣୀ ଯୋଶେଫ୍ ମନରେ ବିଦ୍ରୋହର ବହ୍ନିକୁ ପ୍ରଜ୍ୱଳିତ କରିଛି ଏବଂ ସେ ସଂଗ୍ରାମ କରିବ ବୋଲି ହୋଇଛି ସଂକଳ୍ପବଦ୍ଧ । ଏଥିନିମନ୍ତେ ଆସନ୍ତା ନିର୍ବାଚନରେ ହିନ୍ଦୁ ପ୍ରାର୍ଥୀଙ୍କୁ ଖ୍ରୀଷ୍ଟିଆନ ଓ ମୁସଲମାନମାନେ ଭୋଟ ନ ଦେବା ନିମନ୍ତେ ଏକ ପ୍ରକାର ସ୍ଥିର କରାଯାଇଛି । ନାଟ୍ୟକାର ଏହା ମାଧ୍ୟମରେ ଧର୍ମ ଧର୍ମକୁ ନେଇ ହେଉଥିବା ଦ୍ୱନ୍ଦ୍ୱ ଓ ସଂଘର୍ଷର ଚିତ୍ର ପ୍ରଦାନ କରିଛନ୍ତି । ଭିନ୍ନ ଭିନ୍ନ ଧର୍ମାବଲମ୍ବୀ ମାନବିକତାକୁ ଜଳାଞ୍ଜଳୀ ଦେଇ ସ୍ୱାର୍ଥ ହାସଲ ନିମିତ୍ତ ଧର୍ମକୁ ନେଇ ମଣିଷ କିପରି ମଣିଷର ଜୀବନ ନେଉଛି ତାର ଏକ ବଳିଷ୍ଠ ନିଦର୍ଶନ ଏ ନାଟକ ।

ଧର୍ମକୁ ଦ୍ୱାହି ଦେଇ ସଂପ୍ରଦାୟିକ ତାର ରଂଗ ବୋଲି ରାଜନୀତିରେ ମାହସେବକ ଧର୍ମଭିତ୍ତିକି ଦ୍ୱନ୍ଦ୍ୱ ସୃଷ୍ଟି କରାଇଛି । ସମାଲୋଚକ ଜ୍ଞାନୀ ଦେବାଶିଷଙ୍କ ମତରେ, "ଘଟିଯାଇଥିବା ଘଟଣାରୁ ଧର୍ମର ଦ୍ୱାହି ଦେଇ ସାଂପ୍ରଦାୟିକତାର ରଙ୍ଗବୋଳି କିପରି ରାଜନୀତିର ବ୍ୟବହାର କରାଯାଇପାରେ, ମହା ପୂଜକ ଓ ସୁଲେମାନ ଭିତରେ ଚାଲିଥିବା ରାଜନୀତିକ ହୃଦବୋଧରେ ସେ ସୂଚନା ଉପଲବ୍ଧ । ଯୋଶେଫ, ସୁଲେମାନ ଓ ମହାସେବକ ଭିତରେ ଧର୍ମଭିତ୍ତିକ ଦ୍ୱନ୍ଦ୍ୱକୁ ଆଶ୍ରାକରି ନାଟ୍ୟକାର ଦେଶର ସାଂପଦ୍ରାୟିକ ବିଦ୍ୱେଷଭାବକୁ ସୂଚାଇବା ନିମିତ୍ତ ପ୍ରୟାସ କରିଛନ୍ତି । (୫)

ନାଟକର ଖଳନାୟକ ତଥା କାମୁକ ମହାସେବକ ନିର୍ବାଚନର ରଣାଙ୍ଗନରେ ସୁଲେମାନ ସହିତ ମୁକାବିଲା କରିବା ନିମନ୍ତେ ଆଗେଇ ଆସିଛି ଈଶ୍ୱରଙ୍କ ନିବାସର ଜଣେ ପରିଚିତ ପ୍ରତିନିଧି ଭାବରେ । ସେ ଜନସାଧାରଣଙ୍କ ମୂଲ୍ୟବାନ ଭୋଟ ପାଇ ଜୟଯୁକ୍ତ ହେବାର ସ୍ୱପ୍ନରେ ବିଭୋର ଥିବାବେଳେ ଅନ୍ୟ ପକ୍ଷରେ ସୁଲେମାନ ସମାଜରେ ଚାଲିଥିବା ବ୍ୟଭିଚାରର ମୂଳୋତ୍ପାଟନ ସହିତ ସମାଜର ଲଂପଟ ଚରିତ୍ରମାନଙ୍କ ମୁଖା ଖୋଲିଦେବା ପାଇଁ ନିର୍ବାଚନରେ ତାକୁ ଭୋଟ ଦେଇ ଜୟଯୁକ୍ତ କରିବା ନିମନ୍ତେ ଜନସାଧାରଣଙ୍କୁ ଅନୁରୋଧ କରିଛି । ସୁଲେମାନ ମତରେ ଈଶ୍ୱର ସବୁ ଧର୍ମର ପ୍ରତିନିଧି କୌଣସି ନିର୍ଦ୍ଦିଷ୍ଟ ଧର୍ମର ନୁହଁନ୍ତି । ଯାହାକୁ ଈଶ୍ୱର ମଧ୍ୟ ନିଜ ମନ୍ତବ୍ୟ ମାଧ୍ୟମରେ କହିଛନ୍ତି- "xxx ମୋ ସୃଷ୍ଟିରେ କେବଳ ଗୋଟିଏ ଧର୍ମ ରହିଛି ସେଇଟି ହେଉଛି ମାନବଧର୍ମ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ଶିଖ୍, ବୌଦ୍ଧ, ଜୈନ ଏ ସବୁ ସେଇ ଗୋଟିଏ ରୂପର ରୂପାନ୍ତର ମାତ୍ର ।"(୬) ସ୍ୱାର୍ଥାନ୍ଧ ମଣିଷ ମନ୍ଦିର ଓ ମସ୍‌ଜିଦ୍ ଭିତରେ ଈଶ୍ୱରଙ୍କୁ ଖୋଜିଥାନ୍ତି କିନ୍ତୁ ପ୍ରକୃତରେ ଉପାସନାର ସ୍ଥାନ ମନ୍ଦିର ନୁହେଁ ବରଂ ପ୍ରତ୍ୟେକ ମଣିଷର ହୃଦୟ ଭିତରେ ସେ ଥାନ୍ତି ବୋଲି ମତପୋଷଣ କରିଛନ୍ତି ଈଶ୍ୱର । ପରିଶେଷରେ ଈଶ୍ୱର ଦୋଷାରୋପର ବଳୟ ଭିତରୁ ମୁକ୍ତି ପାଇବା ନିମନ୍ତେ ଆଶ୍ରୟ ଖୋଜନ୍ତି । କିନ୍ତୁ ମହାସେବକ ଭଳି ଧର୍ମଦ୍ରୋହୀ ମଣିଷମାନେ ଈଶ୍ୱରଙ୍କ ନାଁରେ ଅପପ୍ରଚାର କରି ତାଙ୍କର ଉପସ୍ଥିତିକୁ ଅସ୍ୱୀକାର କରନ୍ତି ଏବଂ ଈଶ୍ୱରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି, ମଣିଷ ମାନଙ୍କ ପାଇଁ ତାଙ୍କର ଆଉ ପ୍ରୟୋଜନ ନାହିଁ ବୋଲି କହି ଈଶ୍ୱରଙ୍କୁ ଏକାନ୍ତ ଅସହାୟ କରି ନିଜ ପାଇଁ ଆଶ୍ରା ଖୋଜିବାକୁ ବାଧ୍ୟ କରିଛନ୍ତି ।

ବିବିଧତା ମଧ୍ୟରେ ଏକତାକୁ ନେଇ ଗର୍ବ ଅନୁଭବ କରୁଥିବା ଭାରତୀୟଙ୍କୁ ଭାଗ ଭାଗ କରିବାର ଷଡ଼ଯନ୍ତ୍ର କରୁଥିବା ବ୍ୟକ୍ତିମାନଙ୍କ ମୁଖା ଏଠାରେ ଖୋଲି ଦିଆଯାଇଛି । ଧର୍ମାନୁଷ୍ଠାନମାନଙ୍କଠାରୁ ଆରମ୍ଭ କରି ରାଜନୀତି ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ସାଂପ୍ରଦାୟିକ ସଂଘର୍ଷ ଘଟାଇ ସଂସ୍କୃତିର ଅବକ୍ଷୟ କରାଇବାରେ ଏମାନେ ପ୍ରମୁଖ ଭୂମିକା ଗ୍ରହଣ କରୁଛନ୍ତି । ଚାରିଆଡ଼େ ଶୋଷଣର ଓ ଭଣ୍ଡାମିର ଚିତ୍ର ସମାଜକୁ ତଳିତଳାନ୍ତ କରିପକାଉଛି । ଈଶ୍ୱରଙ୍କ ପ୍ରତି ମଣିଷମାନଙ୍କର ବିଶ୍ୱାସ

ତୁଟିଯାଉଛି । ଏପରିକି ଈଶ୍ୱର ନିଜକୁ ସୁରକ୍ଷା ଦେବାପାଇଁ ଅସମର୍ଥ ଥିବା ଦୃଶ୍ୟ ମଧ୍ୟ ରହିଛି ନାଟକରେ । ସର୍ବୋପରି ଧର୍ମ ସଂପଦାୟ ନାଁରେ ଚାଲିଥିବା ଅରାଜକତା, ଦୁର୍ନୀତି, ଭ୍ରଷ୍ଟାଚାରର ଏକ ନଗ୍ନରୂପ ଦେଖିବାକୁ ମିଳେ ଏହି ନାଟକରେ । ନାଟ୍ୟକାର ସାଂସ୍କୃତିକ ଅବକ୍ଷୟ ସହ ଭ୍ରଷ୍ଟ ରାଜନେତା ତଥା ଶଠ ବଡ଼ପଣ୍ଡାମାନଙ୍କ ସ୍ୱରୂପକୁ ନାଟକ ମାଧ୍ୟମରେ ଜନସାଧାରଣଙ୍କ ସାମ୍ନାକୁ ଆଣିବା ସହିତ ଅବକ୍ଷୟ ସଂସ୍କୃତିର ପୁନଃରୁଦ୍ଧାର ପାଇଁ ସତର୍କବାଣୀ ଶୁଣାଇଛନ୍ତି । ଏହି ପରିପ୍ରେକ୍ଷୀରେ ନାଟ୍ୟକାର ଶଙ୍କର ତ୍ରିପାଠୀଙ୍କ 'ସରୀସୃପ' ନାଟକରେ ଦେଇଥିବା ବକ୍ତବ୍ୟକୁ ଉଦ୍ଧାର କରାଯାଇପାରେ। ସେ କହିଛନ୍ତି- "ଯେଉଁ ମାଟି ଉପରେ ଆମେ ପାଦ ଦେଇଛେ, ସେ ମାଟି କାହାର? ହିନ୍ଦୁର? ମୁସଲମାନର? ଖ୍ରୀଷ୍ଟିଆନର? କାହାର? ବିଭିନ୍ନ ଧର୍ମାବଲମ୍ବୀମାନଙ୍କୁ ନେଇ ଗଢ଼ିଉଠିଥିବା ଦେଶମାନଙ୍କର ମାଟି, ପାଣି, ପବନ, ଆକାଶରେ କିଛି ଆକୃତିଗତ ପାର୍ଥକ୍ୟ ଅଛି କି? ଯଦି ନାହିଁ ତେବେ ଚାଖଣ୍ଡେ ମାଟି ପାଇଁ କାହିଁକି ଏତେ ରକ୍ତପାତ, ଦଙ୍ଗା, ସାଂପ୍ରଦାୟିକତା? XXX ଏଇ ଧର୍ମର ଖୋଳ ଭିତରେ ପେଟେଇ ପଡ଼ିଥିବା ସରୀସୃପମାନଙ୍କ ବିରୁଦ୍ଧରେ ଖୋଲାଖୋଲି ବିଦ୍ରୋହ କରିବାର ପ୍ରୟାସ ଆସି ପହଞ୍ଚିଛି।"(୭) ଠିକ୍ ଏହିପରି ଏକ ବିପର୍ଯ୍ୟୟ ସଂସ୍କୃତିର ସୁରକ୍ଷା ନିମିତ୍ତ ଏମିତି ଏକ ବିଦ୍ରୋହର ଆବଶ୍ୟକତା ରହିଛି ବୋଲି ନାଟ୍ୟକାର ଡକ୍ଟର ସାହୁ ଜନସମାଜକୁ ସଚେତନ କରାଇ ଦେଇଛନ୍ତି ଏହି ନାଟକ ମାଧ୍ୟମରେ। ବାସ୍ତବରେ ନାଟକ ରଚନା କ୍ଷେତ୍ରରେ ଏଯାବତ୍ ସକ୍ରିୟ ଥିବା ନାଟ୍ୟକାର ଡକ୍ଟର ସାହୁ ପରିବର୍ତ୍ତିତ ସମାଜର ସାଂସ୍କୃତିକ ଅବକ୍ଷୟର ପ୍ରତିଟି ମୁହୂର୍ତ୍ତକୁ ତର୍ଜମା କରି ନିଜ ଜୀବନ ପରିଧି ତଥା ପାରିପାର୍ଶ୍ୱିକ ପରିବେଶରେ ଘଟୁଥିବା ଘଟଣାଗୁଡ଼ିକୁ ନାଟକୀୟ ରୂପ ଦେଇ ଜନସାଧାରଣଙ୍କୁ ପ୍ରଭାବିତ କରିବାରେ ସଫଳ ହୋଇଛନ୍ତି, ଯାହା ତାଙ୍କ ନାଟ୍ୟ ପ୍ରତିଭାର ଚରମ ନିଦର୍ଶନ ।

**ପଦଟୀକା**

(୧) ସାହୁ, ଡକ୍ଟର ନାରାୟଣ, ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର, ପୃଷ୍ଠା- ୫ (ଅଗ୍ରଲେଖ)

୨ ସାହୁ, ଡକ୍ଟର ନାରାୟଣ, ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର, ପୃଷ୍ଠା- ୮୩-୮୪

୩ ସାହୁ, ଡକ୍ଟର ନାରାୟଣ, ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର, ପୃଷ୍ଠା- ୭୬

୪ ସାମନ୍ତରାୟ, ଡକ୍ଟର ରମାକାନ୍ତ, ଅଶି ପରର ଓଡ଼ିଆ ନାଟକ, ପୃଷ୍ଠା- ୨୦୫

୫ ମିଶ୍ର, ଡକ୍ଟର ଦେବାଶିଷ, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକ ଓ ପ୍ରତିବାଦ ଓ ପ୍ରତିବଦ୍ଧତାର ସ୍ୱର, ପୃଷ୍ଠା- ୩୧୮

୬ ସାହୁ, ଡକ୍ଟର ନାରାୟଣ, ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର, ପୃଷ୍ଠା- ୧୦୨

୭ ତ୍ରିପାଠୀ, ଶଙ୍କର ପ୍ରସାଦ, ସରୀସୃପ, ପୃଷ୍ଠା: ଆତ୍ମଲିପି

**ସହାୟକ ଗ୍ରନ୍ଥସୂଚୀ**


୧. ତ୍ରିପାଠୀ, ଶଙ୍କର ପ୍ରସାଦ- ସରୀସୃପ, ପ୍ରଥମ ପ୍ରକାଶ, ଶ୍ରୀ କ୍ଷେତ୍ର ନାଟ୍ୟଶାଳା, ପୁରୀ, ୧୯୯୪।

୨. ଦାଶ, ହେମନ୍ତ କୁମାର- ଓଡ଼ିଆ ନାଟକର ଉତ୍ତର ଆଧୁନିକ ପର୍ବ, ପ୍ରଥମ ପ୍ରକାଶ, ବିଦ୍ୟାପୁରୀ, ବାଲୁବଜାର, କଟକ, ୨୦୦୮ ।

୩. ମିଶ୍ର, ଡକ୍ଟର ଜ୍ଞାନୀ ଦେବାଶିଷ, "ନଟ, ନାଟ୍ୟ, ନାଟ୍ୟାୟନ", ପ୍ରଥମ ପ୍ରକାଶ, ସତ୍ୟନାରାୟଣ ବୁକ୍‌ଷ୍ଟୋର, କଟକ, ୨୦୧୫।

୪. ମୁଦାଲି, ଡକ୍ଟର ସମର (ସଂ), "ମୁଁ ଓ ମୋ ନାଟକ", ପ୍ରଥମ ସଂସ୍କରଣ, ବିଜୟିନୀ ପବ୍ଲିକେସନ୍ସ, କଟକ, ୨୦୧୪ ।

୫. ସାରଳା ସାହିତ୍ୟ ସଂସଦ (ସଂ), 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକ ଓ ନାଟ୍ୟକାର', ପ୍ରଥମ ପ୍ରକାଶ, ଓଡ଼ିଆ ବୁକ୍‌ଷ୍ଟୋର, କଟକ, ୨୦୧୯ ।

୬. ସାମନ୍ତରାୟ, ଡକ୍ଟର ରମାକାନ୍ତ, "ଅଶି ପରର ଓଡ଼ିଆ ନାଟକ", ପ୍ରଥମ ସଂସ୍କରଣ, ଡକ୍ଟର. ରମାକାନ୍ତ ସାମନ୍ତରାୟ, ୨୦୧୦ ।

୭. ସାହୁ, ଡକ୍ଟର ନାରାୟଣ- ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର, ପରିମାର୍ଜିତ ଚତୁର୍ଥ ସଂସ୍କରଣ, ଦେବୀ ଗ୍ରାଫିକ୍ସ, କଟକ, ୨୦୧୬ ।

୮. ସାହୁ, ଡକ୍ଟର ନାରାୟଣ, "ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକ", ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୯୫ ।